# ବୋକା କୋଉଠିକାର !

(ଯୁକ୍ତାକ୍ଷର ବିହୀନ ସରସ, ଶିକ୍ଷାପ୍ରଦ କାହାଣୀ)



ଶ୍ରୀ ବାସୁଦେବ ମହାପାତ୍ର

# ବୋକା କୋଉଠିକାର !

(ଯୁକ୍ତାକ୍ଷର ବିହୀନ ସରସ, ଶିକ୍ଷାପ୍ରଦ କାହାଣୀ)

ଲେଖକ

**ଶ୍ରୀ ବାସୁଦେବ ମହାପାତ୍ର**

ଜାତୀୟ ପୁରସ୍କାରପ୍ରାପ୍ତ ଶିକ୍ଷକ



ଓଡ଼ିଶା ବୁକ୍ ଷ୍ଟୋର

# ବୋକା କୋଉଠିକାର !

ଲେଖକ
**ଶ୍ରୀ ବାସୁଦେବ ମହାପାତ୍ର**
ଜାତୀୟ ପୁରସ୍କାରପ୍ରାପ୍ତ ଶିକ୍ଷକ
କବିସୂର୍ଯ୍ୟନଗର(ଗଞ୍ଜାମ)

ପ୍ରକାଶକ
**ଶ୍ରୀ ବିଜୟ ଶଙ୍କର ପାତ୍ର**
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ : ନବବର୍ଷ, ୨୦୦୦

ପ୍ରଚ୍ଛଦ: **ବିଜୟ ପ୍ରଧାନ**

ଅକ୍ଷରସଜ୍ଜା
**କଂପ୍ୟୁଟର ଟ୍ରିକ୍ସ**, ଲିଙ୍କରୋଡ଼, କଟକ-୧୨

ମୁଦ୍ରଣ
**ପଞ୍ଚସଖା ଅଫସେଟ୍**, କଟକ-୮




## BOKA KOUTHIKAR

By
**Sri Basudev Mohapatra**

Published by
**Sri Bijoy Shankar Patra**
ORISSA BOOK STORE
Binode Behari
Cuttack -753 002

1st Edition : **2000**

PRICE : Rs. **10/-**

ISBN 81- 7400-223-5

)

# ପିଲାଙ୍କ ପାଇଁ ପଦେ

ଏ ହେଉଛି ଗୋଟିଏ କାହାଣୀ ବହି । ତୁମେ ଏହାକୁ ସହଜରେ ପଢ଼ିପାରିବ । ପଢ଼ିବାକୁ ବି ତୁମକୁ ଭାରି ମଜା ଲାଗିବ । ସବୁ କାହାଣୀ ଶେଷରେ କିଛି କିଛି ନୀତିକଥା ଓ ନୀତିବୋଧ ବିଷୟ ଦିଆଯାଇଛି । ତାକୁ ପଢ଼ି ମନେରଖ । ବୁଝା ନ ପଡ଼ିଲେ ଗୁରୁଜୀଙ୍କୁ ପଚାରି ବୁଝ । ତା ଅନୁସାରେ କାମ କର । କାମ କରିବା ଆଗରୁ ଟିକିଏ ଭାବ, ତାହା କଲେ ଭଲ ହେବ କି ନା । ଯାହା କଲେ ଭଲ ହେବ, ତାହା ହିଁ କର ।

ସବୁବେଳେ ଭଲ କଥା ମନକୁ ନିଅ । ଭଲ କଥା କହ । ଭଲ କାମ କର । ଭଲ ବାଟରେ ଚାଲ । ତାହାହେଲେ ସଭିଏଁ ତୁମକୁ ଭଲ ପାଇବେ । ତୁମେ ବଡ଼ ହୋଇ ଘରର ନାଁ ରଖିବ, ଦେଶର ନାଁ ରଖିବ । ଏଇ ଆଶା ନେଇ ବହିଟି ଲେଖିଛି । ତୁମେ ବଡ଼ ହୁଅ, ମୋ ଆଶା ପୂରଣ ହେଉ ।

ତୁମର ଜଣେ ଗୁରୁଜନ

**ଲେଖକ**

# ସୂଚୀ





# ଗଧ ଓ ଗଧିଆ

**ପା**ହାଡ଼ ତଳେ ପୋଖରୀଟିଏ । ସେଥିରେ ବରଷ ସାରା ପାଣି ଭରି ହୋଇ ଥାଏ । କାଉ ଆଖି ପରି ପାଣି । ଦେଖିଲେ ମୁହଁ ଦିଶିବ । ତା ଭିତରେ ହଜାର ହଜାର କଇଁଫୁଲ ଫୁଟିଥାଏ ।



ଦେଖୁଥିଲେ ଦେଖୁଥିବ । ଗାଈଗୋରୁ, ଛେଳି, ମଇଁଷି, ଗଧ, ଘୋଡ଼ା, ଆଦି ପଶୁମାନେ ସେଇ ପୋଖରୀର ପାଣି ପିଉଥିଲେ ।

ସେଇ ପୋଖରୀକୁ ଲାଗି ଗୋଟିଏ ବଡ଼ ଘାସପଡ଼ିଆ ଥାଏ । ତା ଭିତରେ ବଢ଼ିଆ ଛନଛନିଆ ଘାସ ଭରି ହୋଇ

ରହିଥାଏ । ଯେତେ ଚରାପଶୁ ସେଇ ପଡ଼ିଆରେ ଭିଡ଼ ଜମାଉଥିଲେ । ସେମାନେ ପେଟପୂରା ଘାସ ଖାଇ ନିଜ ନିଜ ଜାଗାକୁ ଫେରି ଯାଉଥିଲେ ।

ଦିନେ ଗୋଟିଏ ଗଧ ସେଇ ପଡ଼ିଆରେ ଘାସ ଚରୁଥାଏ । ସେତେବେଳେ ପଡ଼ିଆରେ ଆଉ କୌଣସି ଚରାପଶୁ ନ ଥିଲେ । ବେଳ ବୁଡ଼ି ନ ଥାଏ । ଗଧ ମନକୁ ମନ କହୁଥାଏ- ରାତି ହେବାକୁ ଆହୁରି ବାକି ଅଛି । ଏତେ ସଅଳ ଘରକୁ ଯାଇ କ'ଣ କରିବି ? ଯେତିକି ପାରିବି , ପେଟ ଭରି ଖାଇ ନେଇଥିବି । କାଲି ଚରି ଆସିବାକୁ ହୁଏ ତ ଡେରି ହୋଇଯିବ ।

ପୋଖରୀ ପାଖ ପାହାଡ଼ରେ ଗୋଟିଏ ଗଧିଆ ରହୁଥାଏ । ଗଧିଆ ଥିଲା ଶିକାରୀ ପଶୁ । ବେଳ ବୁଡ଼ିଲେ ସେ ଶିକାର କରି ବାହାରେ । ଯେଉଁ ଦିନ ଯାହା ପାଏ, ସେଥିରେ ଚଳାଇନିଏ ।

ସେଦିନ ଗଧିଆକୁ ଭାରି ଭୋକ ଲାଗୁଥାଏ । ଶିକାର ନ ପାଇ ଦୁଇ ଦିନ ହେଲା ଖାଡ଼ା ଉପାସ ଥାଏ । ଶିକାର ପାଇଁ ସେ ଏଣେ ତେଣେ ଖୋଜି ବୁଲିଲା । କୋଉଠି କିଛି ପାଇଲା ନାହିଁ । ବେଳକୁ ବେଳ ଅଧିକ ଅଧିକ ଭୋକ ହେଉଥାଏ । ସେ ଆଉ ସହି ପାରିଲାନି । ଭାବିଲା- ଯାଏ, ପୋଖରୀରୁ ପେଟେ ପାଣି ପିଇ ଘରକୁ ଫେରିଆସିବି । ଶିକାର ନ ପାଇଲେ କ'ଣ ଅବା କରିବି ? ଯେମିତି ହେଉ ଜୀବନ ରଖିବାକୁ ପଡ଼ିବ ।

ଗଧିଆ ଘାସପଡ଼ିଆ ପାଖ ଦେଇ ପୋଖରୀକୁ ଯାଉଥିଲା । ତା ଆଖିରେ ପଡ଼ିଲା ଗଧ ଉପରେ । ବେଳ ବୁଡ଼ି ଆସୁଥାଏ । ତଥାପି ଗଧ ଏକୁଟିଆ ଚରୁଥାଏ । ତାହା ଦେଖି ଗଧିଆ ଭାବିଲା- ବଢ଼ିଆ ମଉକା ଜୁଟିଛି । ଏଇ ଗଧଟାକୁ କଳେ ବଳେ ମାରି ଖାଇବାକୁ ହେବ । ଏଟା ତ ନିହାତି ବୋକା ପଶୁଟାଏ । କିଛି ଗୋଟାଏ ଫିକର କରିବାକୁ ପଡ଼ିବ ।

ସେ ଚାଲିଲା ଗଧ ପାଖକୁ । ସେତେବେଳକୁ ଗଧ ତା ଘରକୁ ଫେରିଯିବା ପାଇଁ ତିଆର ହେଉଥାଏ । ଗଧିଆ ତା ପାଖକୁ ଯାଇ କହିଲା- ଆଜି କ'ଣ ଏଠି ଏକା ଚରୁଛ, ଗଧ ଭାଇ ?

ଗଧ କହିଲା- ଆଜି ମୋର ଏଠାକୁ ଆସିବାର ଡେରି ହୋଇଗଲା । ଆଉ ସବୁ ପଶୁ ମୋ ଆଗରୁ ଆସି ଚରିସାରି ଯେ ଯାହାର ଘରକୁ ଚାଲିଗଲେ । କ'ଣ କରିବି ? ପେଟ ତ ଅଛି । ତା ଖବର ନ ବୁଝିଲେ ସେ ମାନୁଛି କେତେବେ ? ତେଣୁ ଏକାଟିଆ ଚରୁଥିଲି । ଅବିକା ଘରକୁ ଫେରିଯିବି ।

ଗଧିଆ ଭାବିଲା- ଗଧ ସହିତ ଏମିତି କିଛି ସମୟ କଥା ହେବି । କଥା ହେଉ ହେଉ ରାତି ହୋଇଯିବ । ରାତିରେ ତ ଗଧକୁ ଭଲ ଦେଖା ଯାଏନି । ମୁଁ ଠିକ୍ ବେଳ ଦେଖି ତା ଉପରକୁ କୁଦି ପଡ଼ି ତାକୁ ମାରି ଖାଇବି ।

ଏହା ଭାବି ଗଧିଆ ଗଧକୁ କହିଲା- ତୁମେ ହେଲ ଗଧ । ମୁଁ ହେଉଛି ଗଧିଆ । ଆମ ନାଁ ବେଶ୍ ମେଳ ଖାଉଛି । ମୋ

ମନକୁ ଗୋଟାଏ କଥା ଆସୁଛି । ତୁମେ ଓ ମୁଁ ମିତ ବସିଲେ କେତେ ବଢ଼ିଆ ହେବ !

ଗଧ ଗଧିଆର ଫିକର ବୁଝିପାରି କହିଲା- ସତରେ ବଢ଼ିଆ ହେବ । ତେବେ ଆଜି ବହୁତ ଉଛୁର ହେଲାଣି । ମୁଁ ଯାଏ । କାଲି ପୁଣି ଏଇଠି ଦେଖା ହେବ ।

ଗଧିଆ ଦେଖିଲା, ତା କୌଶଳ କାମ ଦେଲାନି । ତେଣୁ ସେ ତା ମନକଥା ସିଧା ଜଣାଇଦେଲା । କହିଲା-ଆରେ ଗଧ, ଶୁଣ । ତୋ ସାଥିରେ ମିତ ବସିବା କଥା ଛାଡ । ମୋତେ ଭାରି ଭୋକ ଲାଗୁଛି । ତୋତେ ଅବିକା ମାରି ଖାଇବି ।



ଗଧ ଟିକିଏ ମୋଟା ବୁଦ୍ଧିଆ । ତେବେ ବିପଦ ପଡ଼ିଲାଠଉଁ ସେ ମଥା ଖେଳାଇବାକୁ ଲାଗିଲା । ସେ କହିଲା- ଓଃ , ଓଃ ! ମୋ ପଛପଟ ବାଁ ଗୋଡ଼ର ଖୁରାରେ ମୁନିଆ କାଚଟାଏ ଗଳିଗଲା । ଭାରି ପୀଡା ହେଲାଣି । ମୋତେ ମାରି ଖାଅ । ମୁଁ ମନା କରୁନି । ହେଲେ ତା ଆଗରୁ ମୋ ଖୁରାରୁ କାଚଟି ବାହାର କରିଦିଅ ।

ଗଧିଆ ଭାବିଲା- ବଢ଼ିଆ ହେଲା । ଗଧକୁ ଆଗପଟୁ ଖାଇବା ସୁବିଧା ହେବନି । ତା ପଛପଟକୁ ଯାଇ ତାକୁ କାମୁଡ଼ି ଖାଇଯିବି ।

ଗଧିଆ ଗଧର ପଛପଟକୁ ଯେମିତି ଯାଇଛି, ଗଧ କଷି କରି ମାରିଲା ଲାତେ । ଲାତ ଯାଇ ବାଜିଲା ଗଧିଆର ଠିକ୍ ମୁହଁ ଉପରେ । ତା ପାଟି ଫାଟିଗଲା । ସେ ଅଚେତ୍ ହୋଇ ତଳେ ପଡ଼ିଗଲା ।

ତାହା ଦେଖି ଗଧ କହିଲା- ଗଧିଆ ମିତ, ମୋତେ ମାରି ଖାଇବ କ'ଣ ? ଏଠି ଶୋଇ ଶୋଇ ଘାସ ଚରୁଥା । ପାଜି କୁଆଡ଼ର !

ଏହା କହି ଗଧ ତା ଘରକୁ ଛୁ କଲା ।

**ନୀତିକଥା :** ନିରୀହ ଲୋକଙ୍କ ଅନିଷ୍ଟ ପାଞ୍ଚିଲେ ନିଜର ଅନିଷ୍ଟ ହୁଏ । ସାଧାସିଧା ଲୋକକୁ ବୋକା ବୋଲି ଭାବିବା ଠିକ୍ ନୁହେଁ । ଠିକ୍ ବେଳେ ସେ ବୁଦ୍ଧି ଖଟାଇ ନିଜକୁ ବିପଦରୁ ରକ୍ଷା କରିପାରେ । କାହାରି ମିଠା କଥାରେ ଭାସିଯିବା ଠିକ୍ ନୁହେଁ ।

# ନୀତିବୋଧ ପ୍ରଶ୍ନ

## ୧. 'କ' ବିଭାଗ ସହିତ 'ଖ' ବିଭାଗକୁ ଠିକ୍ ଭାବେ ଯୋଡ ।

| 'କ' ବିଭାଗ | 'ଖ' ବିଭାଗ |
| --- | --- |
| i ଡକାୟତମାନେ ଶେଠଙ୍କ ଘରେ ପଶିଲାବେଳେ | ଗଛରୁ ଖସିପଡ଼ି ଛୋଟା ହୋଇଗଲା । |
| ii ନିରୀହ ଲୋକଙ୍କୁ ମାରପିଟ୍ କଲାବେଳେ | ନିଜେ ଦୋଷୀ ରୂପେ ପ୍ରମାଣିତ ହେଲା । |
| | ନିଜେ ମାଡ଼ ଖାଇଲା । |
| iii ମିଛ ମକଦ୍ଦମା କରିବା ଫଳରେ ରଘୁ | ପୁଲିସ୍ ହାତରେ ଧରା ପଡ଼ିଲେ । |
| iv ନଡ଼ିଆ ଚୋରି କଲାବେଳେ ନିଲୁ | |

୨. ବାଙ୍କ ବନେଇ ଚୁନେଇ କଥା କହି ସବୁବେଳେ ଗାଁ ଲୋକଙ୍କୁ ହଇରାଣ କରେ । ତା'ଫଳ କ'ଣ ହେବ, ତଳେ ଦିଆଯାଇଥିବା ବିଷୟରୁ ଗୋଟିଏ ବାଛି କହ ।

(କ) ତାକୁ ସଭିଏଁ ପ୍ରଶଂସା କରିବେ ।

(ଖ) ତାକୁ ଗାଁର ସରପଞ୍ଚ ରୂପେ ବାଛିବେ ।

(ଗ) ତା'ଠାରୁ ଦୂରେଇ ରହିବେ ।

(ଘ) ତା କଥାକୁ ବିଶ୍ୱାସ କରି ତାକୁ ସାହାଯ୍ୟ କରିବେ ।



# ଟୋପିର କରାମତି

**କୋ**ଉ କାଳର କଥା । ଗୋଟିଏ ବଡ଼ ବଣ ଥାଏ । ତାହା ଦଶ କୋଶ ବା କୋଡ଼ିଏ ମାଇଲ ଯାଏଁ ମାଡ଼ି ଯାଇଥିଲା । ସେଥିପାଇଁ ତା ନାଁ ଥିଲା ଦଶ କୋଶିଆ ବଣ । ସେଇ ବଣରେ



ହଜାର ହଜାର ପଶୁ ରହୁଥିଲେ । ଚଢ଼େଇ ଥିଲେ ତାଠଉଁ ଅଧିକ । ମଣିଷ ତା ଭିତରକୁ କେବେ ଆସି ନ ଥିଲା । ମଣିଷ କେମିତିକା ଜୀବ ପଶୁମାନେ ଜାଣି ନ ଥିଲେ । କାରଣ ସେମାନେ ବଣ ବାହାରକୁ ଯାଉ ନ ଥିଲେ । ବଣ ଭିତରେ ତ ଖାଇବା ଜିନିଷ ଢ଼େର ଥିଲା । ବାହାରକୁ ଯିବେ ଅବା କାହିଁକି ?

ଚଢ଼େଇମାନେ ଉଡ଼ିବା ଜୀବ । ସେମାନେ ବଣ ବାହାରକୁ ଉଡ଼ି ଯାଉଥିଲେ । ତେଣୁ ବାହାରର ଅନେକ ଜିନିଷ ସେମାନେ ଦେଖିଥିଲେ । ସେସବୁ ବିଷୟରେ ବି ସେମାନେ ବହୁତ କଥା ଜାଣିଥିଲେ । ତେବେ ସବୁ ଚଢ଼େଇ ଏକା ଭଳି ନ ଥିଲେ । କେତେକ ଚଢ଼େଇ ଥିଲେ ଭାରି ସାଧାସିଧା । ଆଉ କେତେକ ଚଢ଼େଇ ବୁଧିଆ ଥିଲେ । ପେଚା ଥିଲା ସବୁଠାରୁ ବୁଧିଆ ଚଢ଼େଇ ।

ଦିନକର ଘଟଣା । ବଣର ଗୋଟିଏ ଜାଗାରେ ଟୋପିଟାଏ ପଡ଼ିଥିଲା । ବଣର ପଶୁମାନେ ତାହା ଦେଖିଲେ । ତେବେ ସେଇଟି କି ଜିନିଷ ସେମାନେ ଜାଣି ପାରିଲେ ନାହିଁ । ସିଂହ ସେଟାକୁ ଦେଖି କହିଲା- ଏଇଟି ଗୋଟିଏ ଗଛର ଫଳ । ଅନେକ ଦିନ ହେଲା ଗଛରୁ ଝଡ଼ି ତଳେ ପଡ଼ିଯାଇଛି । ସେଥିପାଇଁ କଳା ଦେଖା ଯାଉଛି ।

ଭାଲୁ କହିଲା- ନା, ନା ଏଟା ଗଛର ଫଳ ନୁହେଁ । ଏଇଟି ହେଲା ଗଛର ବକଳ । ଖରାବରଷା ଖାଇ ଏମିତି ମୋଡ଼ି ହୋଇ ଯାଇଛି ।

ଏତିକିବେଳେ ଘୋଡ଼ା ସେଠାକୁ ଆସିଲା । ସେ ଟୋପିକୁ ଦେଖି କହିଲା- ଏଇଟି ଗଛର ଫଳ ନୁହେଁ କି ବକଳ ନୁହେଁ । ଏହା ହେଲା ଗୋଟିଏ ଛୋଟ ପଶୁର ଚମଡା । ଦେଖୁନା, କେମିତି କଳା ଦେଖାଯାଉଛି । ପୁଣି ତା ଉପରେ ଲୋମଗୁଡାଏ ଅଛି । ଚମଡ଼ା ନୁହେଁ ତ ଆଉ କ'ଣ ?

ବିଲୁଆ ସେଠି ଠିଆ ହୋଇ ସବୁ ଶୁଣୁଥିଲା । ସିଂହ ତାକୁ ପଚାରିଲା- କହିଲୁ, ଏଇଟି କି ଜିନିଷ ।

ବିଲୁଆ କହିଲା- ତୁମେ ସବୁ ଯାହା କହିଲ, ତାହା ଜମା ଠିକ୍ ନୁହେଁ । ଏହା ଏକ ଚଢ଼େଇର ବସା । ଗଛ ଉପରୁ ଖସି ତଳେ ପଡ଼ି ଯାଇଛି ।

ବାଘ କୁଆଡୁ ବୁଲି ବୁଲି ଆସି ସେଠି ହାଜର ହେଲା । ସେ ଟୋପି ଆଡେ ନିରେଖି ଚାହିଁଲା । ତାପରେ କହିଲା- ଧେତ୍, ତୁମେମାନେ କିଛି ଜାଣିନା, ଏହା ଏକ ଜାତିର ଛତୁ । ଆକାରରେ ବଡ଼ ହୋଇଥିବାରୁ ତୁମେ ତାକୁ ଜାଣି ପାରୁନା । ଖରା ଲାଗି ଛତୁଟା ପୂରା ଶୁଖିଯାଇଛି । ସେଥିପାଇଁ ଏମିତି ଦେଖାଯାଉଛି ।

ଟୋପିକୁ ଦେଖି ଏମିତି କିଏ କ'ଣ କହିଲେ । ସଭିଏଁ ନିଜ ନିଜ କଥା ଠିକ୍ ବୋଲି ଜୋର ଦେଇ କହିବାକୁ ଲାଗିଲେ । ଏମିତି ହେଉ ହେଉ ନିଜ ନିଜ ଭିତରେ ଝଗଡ଼ା କରିବାକୁ ଲାଗିଲେ ।

ଶେଷରେ ବିଲୁଆ କହିଲା- ଆମେ ଏଠି ଗୋଳମାଳ ଲଗାଇବା କିଆଁ ? ପେଚାକୁ ଡକାଅ । ସେ ଠିକ୍ କଥା କହିପାରିବ ।

ପେଚା ଆସିଲା । ସେ ଟୋପିକୁ ଦେଖି ଦେଖି କହିଲା ଏଇଟି ହେଲା ମଣିଷ ମଥାର ଟୋପି । ମଣିଷର ମଥା ଉପରେ ଏଇଟି ଥାଏ ।

ସିଂହ କହିଲା- କ'ଣ କହିଲୁ, ଟୋପି ? ସେଟା କିମିତିକା ଜିନିଷ ? ଆଉ, ମଣିଷ କିମିତିକା ଜିନିଷ ?

ପେଚା କହିଲା- ଟୋପି ହେଲା ଗୋଟାଏ ଜିନିଷ । ମଣିଷ ହେଲା ଗୋଟାଏ ଜୀବ । ମଣିଷ ତା ମଥା ଉପରେ ଟୋପି ନାଏ । ଏଇ ଥର ବୁଝିଲ ?

ସିଂହ କହିଲା-ବୁଝିଲି କ'ଣ ? କିରେ, ମଣିଷ ଫେର୍ କିମିତିକା ଜୀବ ? କାହିଁ, ଏ ବଣରେ ତ ଗୋଟାଏ ବି ଦେଖିବାକୁ ମିଳୁନି ।

ପେଚା କହିଲା- ସେ ଏକ ଅଜବ ଜୀବ । ତାର ଦୁଇଟି ଗୋଡ଼ । ସେଥିରେ ସେ ଠିଆ ହୋଇ ଚାଲେ, ଦୌଡେ । ପୁଣି ତାର ଦୁଇଟି ହାତ ଅଛି । ସେଥିରେ ସେ ସବୁ କାମ କରିପାରେ ।

ସିଂହ କହିଲା- ମୋଟେ ଦୁଇଟା ଗୋଡ଼ ? ତାହା ହେଲେ ଚାଲିବାବେଳେ ପଡ଼ିଯାଉଥିବ । ତାର ବଳ ବି କମ୍ ହୋଇଥିବ, ନୁହେଁ ?

ପେଚା କହିଲା- ନା, ତା'ର ବହୁତ ବଳ । ମଣିଷ ବି ଭାରି ବୁଧିଆ । ସେ ଚାହିଁଲେ ମଥା ଖଟାଇ ସବୁକିଛି କରି ପାରିବ । ଆମକୁ ମାରି ପାରିବ, ଆମକୁ ପୋଷା ମନାଇ ତା ଘରେ ରଖି ପାରିବ ।

ବାଘ କହିଲା- ମଣିଷଟା ଆମର କଣ କରି ପାରିବ ? ଛାର ଦୁଇଗୋଡ଼ିଆ ଜୀବଟାଏ । ତାକୁ ମୁଁ ଚୋବାଇ ଖାଇଯିବି ।

ପେଚା କହିଲା- ସାବଧାନ ! ତା ହାବୁଡରେ ପଡ଼ିଲେ ତୁମେ ମଲ ବୋଲି ଜାଣ । ତୁମ କପାଳ ଟାଣ । କାରଣ ମଣିଷ



ଏଯାଏଁ ଏ ବଣକୁ ଆସି ନାହିଁ । ମଣିଷ ପଶୁକୁ ଦେଖିଲେ ତା ନଳିରେ ମାରି ପକାଇବ । ସେଇ ନଳିରୁ ଗୁଳି ଫୁଟି ବାହାରେ । ତା ଶବଦ ଶୁଣିଲେ କାନ ତୋବା ପଡ଼ିଯିବ । ଆଉ, ସେଇ ଗୁଳି ଯାହା ଦେହରେ ବାଜିବ, ସେ ସେଇଠି ମରି ପଡ଼ିବ ।

ଏତିକିବେଳେ ଜଣେ ଶିକାରୀ ମଣିଷ ସେଇ ବଣ ଆଡେ ମୁହାଁଇଲା । ତା ମଥାରେ ଥାଏ କଳା ଟୋପି । ହାତରେ ନଳିଟାଏ ଧରିଥାଏ । ହଠାତ୍ ଢ଼ୋ କିନା ଶବଦ ହେଲା । ଚାହୁଁ ଚାହୁଁ ଗୁଳିମାଡ଼ରେ ହରିଣଟାଏ ମରି ତଳେ ପଡ଼ିଗଲା । ତାହା ଦେଖି ବଣ ପଶୁମାନେ କିଏ କୁଆଡ଼େ ଛୁ କଲେ ।

ତାପର ଦିନ ବଣ ଭିତରେ ସିଂହ ଓ ବାଘର ଭେଟ ହେଲା । ସିଂହ ବାଘକୁ କହିଲା- ବାପ୍‌ରେ ବାପ୍, ଦୁଇ ଗୋଡ଼ିଆ ମଣିଷଟା କେତେ ମାରଣା ! ପେଚା ତା ଟୋପିକୁ ଦେଖି ଆମକୁ ଠିକ୍ କଥା କହିଥିଲା । ମଣିଷ ମୁହଁରେ ପଡ଼ିବା ମାନେ ବିପଦକୁ ଡାକି ଆଣିବା । ତା'ଠାରୁ ଦୂରେଇ ରହିବା ଦରକାର ।

**ନୀତିକଥା :** ମୁଁ ସବୁ ଜାଣିଛି ବୋଲି ଭାବିବା ଠିକ୍ ନୁହେଁ । ଯାହା ଜାଣି ନାହଁ, ତାହା ଜାଣିଥିବା ଲୋକଠାରୁ ଶିଖ । ନିଜକୁ ସବୁଠାରୁ ବଳୁଆ ବୋଲି ଭାବିବା ବି ଠିକ୍ ନୁହେଁ । କାରଣ ସଂସାରରେ ତୁମଠାରୁ ଢ଼େର୍ ବଳୁଆ ଲୋକ ଅଛନ୍ତି.। ଦେହର ବଳଠାରୁ ବୁଦ୍ଧିର ବଳ ଅଧିକ ।

## ନୀତିବୋଧ ପ୍ରଶ୍ନ

**୧. କେଉଁଟି ଠିକ୍ ବୁଝି ବିଚାରି କହ :**

ପିଲାମାନେ ଶିକ୍ଷକଙ୍କ ପ୍ରଶ୍ନର ଭିନ୍ନ ଭିନ୍ନ ଉତ୍ତର ଦେଲେ । ପ୍ରତ୍ୟେକ ପିଲା ନିଜ ଉତ୍ତର ହିଁ ଠିକ୍ ବୋଲି କହିଲେ । ସେମାନେ କ'ଣ କରିବା ଉଚିତ୍ ?

(କ) ନିଜ ନିଜ ଭିତରେ ଝଗଡା କରିବେ ।

(ଖ) ଠିକ୍ ଉତ୍ତର ଜାଣିବାକୁ ଚାହିଁବେ ନାହିଁ ।

(ଗ) ଉତ୍ତର ଖାତାକୁ ଚିରିଦେବେ ।

(ଘ) ଶିକ୍ଷକଙ୍କୁ ଠିକ ଉତ୍ତର ପଚାରି ବୁଝିବେ ।

୨. ରାସ୍ତାମଝିରେ ବଡ଼ ପଥରଟାଏ ଅଛି । ସେଇଟିକୁ ହାତରେ ଠେଲି ରାସ୍ତା କଡକୁ ନେବା ପାଇଁ ଚାରି ଜଣ ଲୋକ ଚେଷ୍ଟା କରି ପାରୁ ନାହାନ୍ତି । ସେମାନେ କ'ଣ କରିବା ଠିକ୍ ହେବ ?

(କ) ଶାବଳରେ ପଥରକୁ ଠେସି କାଠ ଉପରେ ତାହାକୁ ଗଡ଼ାଇ ନେଇଯିବେ ।

(ଖ) କୋଡ଼ିଏ ଜଣ ଗାଁ ଲୋକ ଏକାଠି ହୋଇ ହାତରେ ପଥରକୁ ଠେଲିବେ ।

(ଗ) ଦଶ ଜଣ ମୂଲିଆଙ୍କୁ ଡାକି ଆଣି ପଥରକୁ ଘୁଞ୍ଚାଇବେ ।

(ଘ) ପଥରଟିକୁ ରାସ୍ତା ମଝିରେ ଛାଡ଼ି ଚାଲିଯିବେ ।



# ଘୋଡ଼ାର ବୋକାମି

ଅନେକ ଦିନ ତଳର କଥା । ସେତେବେଳେ ସବୁ ପଶୁ ବଣରେ ରହୁଥିଲେ । କେବଳ ଗାଈ ଗୋରୁମାନେ ମଣିଷ ସହିତ ଗାଁରେ ରହୁଥିଲେ । ମଣିଷ ଜମି ଚାଷ କରୁଥିଲା । ସେଥିରୁ ସେ



ଧାନ, ଗହମ ଆଦି ଆଦାୟ କରୁଥିଲା । ତା'ଛଡା ସେ ଧନୁଶର ନେଇ ବଣକୁ ଯାଇ ପଶୁ ଶିକାର କରୁଥିଲା ।

ଦିନେ ଗୋଟିଏ ମଣିଷ ତା ଘରୁ ବାହାରି ପଡ଼ିଲା । ହାତରେ ଧନୁଶର ଧରିଥାଏ । ସେ ବଣ ଆଡେ ଚାଲିଲା । କିଛି ଦୂରରେ ରହି ସେ ବଣ ଆଡ଼େ ନଜର ପକାଇଲା ।

ସେଇ ଧଣକୁ ଲାଗି ଗୋଟିଏ ଘାସ ପଡ଼ିଆ ଥିଲା । ପଡ଼ିଆରେ ବେଶି ଘାସ ନ ଥିଲା । ସେଠି ଗୋଟିଏ ହରିଣ ଚରୁଥାଏ । ଏତିକିବେଳେ ଗୋଟିଏ ଘୋଡ଼ା ସେଠାକୁ ଆସି ଘାସ ଚରିବାକୁ ଲାଗିଲା । ତାହା ଦେଖି ହରିଣ କହିଲା- ଘୋଡ଼ା ମଉସା, ତୁମେ ଆଉ କୋଉଠିକି ଚରିବାକୁ ଯାଅ । ଏଠି ବହୁତ କମ୍ ଘାସ ଅଛି । ଏଠି ଆମେ ଦିହେଁ ଚରିଲେ କାହାରି ପେଟ ପୂରିବ ନାହିଁ ।

ଘୋଡ଼ା କହିଲା- ଏଟା କଣ ତୋ ନିଜ ପଡ଼ିଆ ? ମୁଁ ଅଲବତ୍ ଏଠି ଚରିବି । ତୁ ଆଉ କୋଉ ପଡ଼ିଆକୁ ଚାଲିଯା ।

ହରିଣ କହିଲା- ମୁଁ ଏଠୁ ଚାଲିଯିବି କାହିଁକି ? ମୁଁ ଏଠାକୁ ଆଗେ ଆସିଛି । ତେଣୁ ମୋର ଏଠି ଚରିବା ଅଧିକାର ଅଛି । ତୁମେ ଆଉ କୋଉ ଜାଗାକୁ ଯାଇ ଚର ।

ଘୋଡ଼ା ରାଗିଯାଇ କହିଲା- କିରେ, ତୁ କ'ଣ ବଢ଼ିବଢ଼ି କଥା କହିଲୁଣି ! ମୋ କରାମତି ବୁଝିଛୁଟି ? ଏକା ଲାତକେ ତୋ ପେଟ ଫାଡିଦେବି ।

ହରିଣ ବି ରାଗିଯାଇ କହିଲା- ମୋ ସାମନାକୁ ଆସିଲୁ ଦେଖି । ମୋ ମଥାର ଏଇ ମୂନିଆ ଭୁଷାକୁ ଦେଖ । ଏଥିରେ ତୋ ପେଟକୁ ଭୁଷି କଣା କରିଦେବି ।

ହରିଣ ଆଗକୁ ଯିବାକୁ ଘୋଡ଼ାର ସାହସ ହେଲାନି । ସେ ଭାବିଲା- ମଣିଷ ହାତରେ ଏ ହରିଣକୁ ମରାଇବି । ଏଥିପାଇଁ ମୋତେ ଗୋଟାଏ ଫିକର କରିବାକୁ ପଡ଼ିବ ।

ତାପରେ ଘୋଡ଼ା ଚାଲିଲା ମଣିଷ ପାଖକୁ । ବାଟରେ ମଣିଷକୁ ଦେଖି କହିଲା- ଜୁହାର, ବାବୁ ! କ'ଣ, ଶିକାର କରିବାକୁ ଆସିଥିଲ ?

ମଣିଷ କହିଲା- ହଁ, ସେଥିପାଇଁ ଆସିଛି । ତେବେ ଶିକାର ଜୁଟିବା କ'ଣ ଏତେ ସହଜ ହୋଇଛି ?

ଘୋଡ଼ା କହିଲା- ଜୁଟିବନି କିଆଁ ? ବଢ଼ିଆ ହରିଣଟାଏ ଗୋଟିଏ ପଡ଼ିଆରେ ଚରୁଛି । ଏଠୁ ବେଶି ଦୂର ନୁହେଁ । ମୋ ସାଥିରେ ଆସ । ମୁଁ ତୁମକୁ ଦେଖାଇ ଦେବି । ତାକୁ ତୁମେ ଶରରେ ମାରି ଦିଅ ।

ମଣିଷ କହିଲା- ହରିଣ ଭାରି ତରକା । ମୋତେ ଦେଖିଲେ ସେ ବିଜୁଳି ବେଗରେ ଦୌଡ଼ି ପଳାଇଯିବ । ମୁଁ କଣ ତା ଭଳି ଦୌଡ଼ି ପାରିବି ?

ଘୋଡା କହିଲା- ତୁମେ ସିନା ପାରିବନି । ମୁଁ ତା ଉପାୟ ତୁମକୁ କହି ଦେଉଛି । ମୁଁ ହରିଣ ପରି ଜୋର୍‌ରେ ଦୌଡ଼ିପାରେ । ତୁମେ ମୋ ପିଠି ଉପରେ ବସ । ମୁଁ ତୁମକୁ ହରିଣ ପାଖକୁ ନେଇଯିବି ।

ମଣିଷ କହିଲା- ତୋ ପିଠି ଉପରେ ମୁଁ ବସିବିନା ? ତୁ ଦୌଡ଼ିଲେ ମୁଁ ତୋ ପିଠିରୁ ଖପ୍‌କିନା ତଳେ ପଡ଼ିଯିବି । ତୋତେ ଅଟକାଇବାକୁ ମୋର ଚାରା କାହିଁ ?

ଘୋଡା କହିଲା- ତା ଉପାୟ ବି ମୁଁ ତୁମକୁ କହି ଦେଉଛି । ମୋ ପାଟିରେ ଗୋଟିଏ ରସି ଲଗାଇ ତୁମେ ସେଇଟିକୁ ତୁମ ହାତରେ ଧରିଥାଅ । ତୁମେ ସେଇ ରସିକୁ ଧରି ଟାଣିଲେ ମୁଁ ଛାଏଁ ଅଟକି ଯିବି । ତେଣିକି ତୁମେ ଯେଉଁଠି ଚାହିଁବ, ସେଠି ମୋତେ ଅଟକାଇ ପାରିବ ।



ମଣିଷ ଭାବିଲା, ଘୋଡ଼ା ଏଣିକି ତାର ବେଶ୍ କାମରେ ଆସିବ । ସେ କହିଲା- ଠିକ୍ ଅଛି, ମୁଁ ରସିଟାଏ ନେଇ ଆସୁଛି ।

ମଣିଷ ଗୋଟିଏ ରସିକୁ ଘୋଡାର ଲଗାମ କରି ତା ପାଟିରେ ଲଗାଇଦେଲା । ତାପରେ ସେ ତା ପିଠି ଉପରେ ବସି ଘୋଡ଼ା ଛୁଟାଇଲା । ମଣିଷକୁ ଦେଖି ହରିଣ ଛାନିଆ ହୋଇ

ଦୌଡ଼ିବାକୁ ଲାଗିଲା । ଘୋଡ଼ା ବି ଦୌଡୁଥାଏ । ଏତିକିବେଳେ ମଣିଷ  ହରିଣକୁ ଲାଖ କରି ଶର ଛାଡ଼ିଲା । ଶର ଯାଇ ହରିଣ ପିଠିରେ ଗଳିଗଲା । ହରିଣ ଛଟପଟ ହୋଇ ମରିଗଲା ।

ମଣିଷ ମଲା ହରିଣକୁ ଘୋଡ଼ା ପିଠିରେ ଲଦି ତା ଘରକୁ ଫେରିଲା । ସେ ହରିଣ ମାଂସ ଖାଇ ଭାରି ଖୁସି ହେଲା । ଘୋଡାକୁ ଘାସ ଖାଇବାକୁ ଦେଲା । ସେ ଦିନ ଘୋଡ଼ା ମଣିଷ ଘରେ ରହିଲା । ତା ପରଦିନ ସକାଳେ ସେ ମଣିଷକୁ କହିଲା- ମୋ କାମ ସରିଲା । ମୁଁ ବଣକୁ ଚାଲିଲି ।

ମଣିଷ କହିଲା- ଯିବୁ କୁଆଡ଼େ ? ତୁ ମୋତେ ବଢ଼ିଆ ଉପାୟ ବତାଇ ଦେଇଛୁ । ଏଣିକି ତୋ ପିଠିରେ ବସି ଶିକାର କରିବାକୁ ଯିବି । ପଶୁ ଚମଡ଼ାରେ ତୋ ପାଇଁ ଟାଣୁଆ ଲଗାମଟିଏ କରିଦେବି । ଶିକାର କରିବାରେ ମୋର ଭାରି ସୁବିଧା ହେବ ।

ଘୋଡ଼ା କହିଲା- ମୁଁ ତୁମର ଏତେ ଉପକାର କଲି । ଦୟା କରି ମୋତେ ଛାଡ଼ିଦିଅ ।

ମଣିଷ କହିଲା- ତୋ ଫିକର ମୁଁ ବେଶ୍ ବୁଝି ପାରିଛି । ମୋ ଉପକାର କରିବା ପାଇଁ ତୁ ମୋ ପାଖକୁ ଆସି ନଥିଲୁ । ହରିଣକୁ ମରେଇବା ପାଇଁ ତୁ ମୋ ପାଖକୁ ଦୌଡ଼ି ଆସିଥିଲୁ । ଏଣିକି ତୁ ଏଠି ରହିବୁ । ତୋ ପାଇଁ ଅଲଗା ଘୋଡ଼ାଶାଳଟିଏ ତିଆରି କରିଦେବି । ମୁଁ ଗାଡ଼ିଟିଏ ତିଆରି କରିବି । ତୁ ସେଇ ଗାଡ଼ି ଟାଣିବୁ । ମୁଁ ଓ ମୋ ପରିବାରର ଲୋକମାନେ ଗାଡ଼ିରେ

ବସି ଯେଉଁଠିକି ଚାହିଁବୁ, ଯିବୁ । ତାଛଡ଼ା ତୁ ମୋର ଜମି ଚାଷ କରିବୁ ।

ଘୋଡ଼ା ଏବେ ନିଜର ବୋକାମି ବୁଝି ପାରିଲା । ନିଜେ ତ ଭୁଲ କରିଛି । ଦୋଷ ଦେବ ଆଉ କାହାକୁ ? ସେ ଊଁ ଚୁଁ କିଛି ନ କରି ମଣିଷର ପୋଷା ପଶୁ ହୋଇ ରହିଲା ।

**ନୀତିକଥା :** ନିଜ ସୁବିଧା ଲାଗି ଅନ୍ୟର କ୍ଷତି କରିବା ଉଚିତ ନୁହେଁ । ଅନ୍ୟର ଅନିଷ୍ଟ କରିବାକୁ ଗଲେ ନିଜର ଅନିଷ୍ଟ ହୁଏ । ଦୁଇ ଜଣ କଳି କଲେ ତୃତୀୟ ଲୋକର ଲାଭ ହୁଏ ।

## ନୀତିବୋଧ ପ୍ରଶ୍ନ

**୧. ଇତିହାସର ବିଷୟଟି ତଳେ ଦିଆଯାଇଛି । ଏହାଦ୍ୱାରା କେଉଁ ଘଟଣା ଘଟିଥିବ, ବୁଝି ବିଚାରି କହ ?**

ଦିଲ୍ଲୀର ରାଜା ପୃଥ୍ୱୀରାଜଙ୍କ ସହିତ କନୌଜର ରାଜା ଜୟଚନ୍ଦ୍ରଙ୍କର ଶତ୍ରୁତା ଥିଲା । ପୃଥ୍ୱୀରାଜଙ୍କୁ ରାଜଗାଦିରୁ ହଟାଇବା ପାଇଁ ଜୟଚନ୍ଦ୍ର ବିଦେଶର ମହମ୍ମଦ ଘୋରୀଙ୍କୁ ଭାରତକୁ ଆମନ୍ତ୍ରଣ କଲେ ।

(କ) ମହମ୍ମଦ ଦିଲ୍ଲୀ ଅଧିକାର କରି ଜୟଚନ୍ଦ୍ରଙ୍କୁ ଦିଲ୍ଲୀ ସିଂହାସନରେ ବସାଇଥିଲେ ।

(ଖ) ଦିଲ୍ଲୀ ଅଧିକାର କରିବା ପରେ କନୌଜ ରାଜ୍ୟ ଅଧିକାର କରିଥିବେ ।

(ଗ) ମହମ୍ମଦ ଜୟଚନ୍ଦ୍ରଙ୍କ କଥା ଶୁଣି ନ ଥିବେ ।

(ଘ) ସେ ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କୁ ବୁଝାଇ ସେମାନଙ୍କୁ ମିତ୍ର କରାଇଥିବେ ।

୨. କେନାଲ ପାଣି ତୁମ ଜମି ଦେଇ ଅନ୍ୟ ଜମିକୁ ଯାଏ । ପାଖ ଜମିବାଲାଙ୍କ ସହିତ ତୁମ ଘରଲୋକଙ୍କ ଭଲ ପଡ଼େନି । ପାଣିର ଅଭାବ ଥିଲାବେଳେ କେନାଲ ପାଣି ଛଡ଼ାଗଲା । ତୁମେ କଣ କରିବ ?

(କ) ପାଖ ଜମିକୁ ପାଣି ଛାଡ଼ିବ ନାହିଁ ।

(ଖ) ଜମିବାଲା ଟଙ୍କା ଦେଲେ ତୁମେ ପାଣି ଛାଡ଼ିବ ।

(ଗ) ନିଜ ଜମିକୁ ବି ପାଣି ଆଣିବ ନାହିଁ ।

(ଘ) ବହୁ ଲୋକଙ୍କ ସୁବିଧା ପାଇଁ ପାଣି ଛାଡ଼ିଦେବ ।



# ମନକୁ ମନ ରାଜା

**ପା**ହାଡ଼ ତଳେ ଗୋଟିଏ ବଣ ଥାଏ । ସେଇ ବଣରେ ଗୋଟିଏ ମହାବଳ ବାଘ ରହୁଥାଏ । ରାତି ହେଲେ ସେ ଶିକାର



କରିବାକୁ ବାହାରେ । ହରିଣ, ଛେଳି, ଗାଈ ଆଦି ଚରାପଶୁ ଭିତରୁ ଯିଏ ତା ଆଖିରେ ପଡ଼େ, ସେ ତାକୁ ମାରି ଖାଇଯାଏ । ସେଥିପାଇଁ ରାତି ହେଲେ ବାଘ ଭୟରେ ଚରାପଶୁମାନେ କିଏ କୋଉଠି ଲୁଚି ରହୁଥିଲେ ।

ବାଘ କି ସହଜରେ ଛାଡ଼ିବା ପଶୁ ? ସେ ସବୁ ଜାଗା ବୁଲି ଶିକାର ଖୋଜୁଥାଏ । ଥରେ ତା ହାବୁଡ଼ରେ କୌଣସି ଶିକାର ପଶୁ ପଡ଼ିଲେ ସେ ଆଗେ ତା ବେକ କଣା କରି ରକତତକ ପିଇଯାଏ । ତାପରେ ଘେରାଏ ବୁଲି ଆସି ତା ମାଉଁସ ଖାଏ । ପେଟ ପୂରିଗଲେ ସେ ନିଛାଟିଆ ଜାଗା ଦେଖି ସେଠି ଥକା ମାରେ ।

ଦିନକର ଘଟଣା । ବାଘ ଶିକାରରୁ ଫେରି ଗୋଟିଏ ଗଛ ତଳେ ଶୋଇଥାଏ । ଗୁଡ଼ାଏ ଖାଇଥିବାରୁ ତା ପେଟ ଭାରୀ ଲାଗୁଥାଏ । ସେ ଭାବୁଥାଏ- କିଛି ସମୟ ପରେ ମୋ ଆହାର ହଜମ ହୋଇଯିବ । ପେଟ ଟିକିଏ ହାଲୁକା ଲାଗିଲେ ଏଠାରୁ ମୋ ଘରକୁ ଫେରିଯିବି ।

ଏତିକିବେଳେ ପଡ଼ିଆରେ ଘାସ ଚରି ସାରି ଗୋଟିଏ ଛେଳି ସେ ବାଟ ଦେଇ ଆସୁଥିଲା । ଗଛ ତଳେ ବାଘ ଶୋଇଥିବା ଦେଖି ସେ ଚମକି ପଡ଼ିଲା । ଭାବିଲା- ଆଜି ବାଘ ମୁହଁରେ ପଡ଼ିଲି । ଏ ମୋତେ କଣ ନ ମାରି ଛାଡ଼ିଦେବ ?

ଛେଳି ଡରିମରି ବାଘଆଡ଼େ ଚାହିଁଲା । ଦେଖିଲା ବାଘ ଥିରି ହୋଇ ଶୋଇଛି । ତା ଆଡ଼େ ଜମା ନଜର ଦେଉନି । ଛେଳି ମନରେ ଟିକିଏ ସାହସ ଆସିଲା । ସେ ଦୁଇ ଚାରି ପାଦ ଆଗେଇ ଯାଇ ଅନାଇଲା । ଏବେ ବାଘ ତା ଆଡ଼େ ଚାହିଁଲା । ହେଲେ, ସେ ଶୋଇଲା ଜାଗାରୁ ଉଠୁ ନଥାଏ ।

ଏଥିରେ ଛେଳିର ସାହସ ବଢ଼ିଗଲା । ସେ ବାଘର ପାଖ ଯାଏଁ ଚାଲିଗଲା । ତଥାପି ବାଘ ତାକୁ କିଛି କଲାନି । ଛେଳି ଭାବିଲା- ବାଘ ମୋତେ ଡରିଗଲାଣି । ଏ ଆମ ରାଜା ହେବ ଆଉ କ'ଣ ? ଏଣିକି ଏ ବଣର ରାଜା ହେବି ମୁଁ ।

ଏହା ଭାବି ଛେଳି ବଣ ଭିତରେ ଏପଟ ସେପଟ ଦୌଡ଼ିବାକୁ ଲାଗିଲା । ବାଟରେ ଆଗେ ଗଧକୁ ଦେଖି ସେ ତା ମନକଥା ଜଣାଇଲା । ଗଧ କହିଲା- ଭଲ କଥା । ତୁମେ ରାଜା ହେଲେ ଆମେ ଆଉ ବାଘରାଜାର ଶିକାର ହେବୁନି ।

ଛେଳି କୁକୁରକୁ ଏ କଥା କହିଲା । କୁକୁର କହିଲା-ଡାହା ମିଛ କଥା । ବାଘ ତୋତେ ଡରିବ କିଆଁ ? ମୁଁ ନିଜ ଆଖିରେ ଦେଖିଲେ ହେଁ ତୋ କଥାର ପରତେ ଯିବି ।

ତାପରେ ଛେଳି ବିଲୁଆକୁ ଏକଥା ଜଣାଇଲା । ବିଲୁଆ କହିଲା-ଧେତ୍, ଇଏ ଗୋଟାଏ କଥା ! ତୁ ହେଲୁ ବାଘର ଆହାର । ତା ଆଗରେ ପଡ଼ିଲେ ତୋତେ ଟେକି ନେଇ ଜଳଖିଆ କରିଦେବ ।

ଛେଳି ଏମିତି ଗୋଟିଏ ପରେ ଗୋଟିଏ ପଶୁ ପାଖକୁ ଯାଇ ଏ କଥା କହିଲା । ସେ କହିଲା-ମୋ ସାଥିରେ ସଭିଏଁ ଆସ । ନିଜ ଆଖିରେ ଦେଖିଯିବ । ମୋ କଥା ଯଦି ସତ ହୁଏ,ତେବେ ଆଜିଠାରୁ ମୁଁ ଏ ବଣର ରାଜା ହେବି । ତେଣିକି ସଭିଏଁ ମୋ କଥା ମାନି ଚଳିବ ।

ଛେଳିର କଥା ଶୁଣି ସବୁ ପଶୁ ତା ପଛେ ପଛେ ଚାଲିଲେ । ସେମାନେ ଦେଖିଲେ, ବାଘ ଆରାମରେ ଶୋଇଛି । ଛେଳି ତା ପାଖକୁ ଯାଇ ଠିଆ ହୋଇ କହିଲା-ପଶୁ ଭାଇମାନେ, ମୋ କଥା ସତ କି ମିଛ, ଦେଖ । ବାଘ ମୋତେ ଡରି ଶୋଇଲା ଜାଗାରୁ ଉଠୁନି । ତେଣୁ ମୁଁ ଆଜିଠାରୁ ଏ ବଣର ରାଜା ହେଲି ।

ବିଲୁଆ କହିଲା- ଏତେ ସହଜରେ ଆମେ ତୋତେ ରାଜା ବୋଲି ମାନିଯିବୁ ? ଦେଖି , ତୁ ଆମ ରାଜାର ପିଠି ଉପରେ ଠିଆ ହେଲୁ ।



ରାଜା ହେବା ପାଇଁ ଛେଳି ଏକ ରକମ ପାଗଳ ହୋଇ ଯାଇଥିଲା । ସେ ଆଗପଛ କିଛି ନ ଭାବି ସିଧା ଚଢ଼ିଗଲା ବାଘର ପିଠି ଉପରକୁ । ସେତେବେଳେ ବାଘର ଆହାର ହଜମ ହୋଇଯାଇଥାଏ । ସେ ଠିଆ ହୋଇ ଭୀଷଣ ରଡ଼ି ଛାଡ଼ିଲା । ତା ରଡ଼ିରେ ବଣଟା ସତେ ଯିମିତି ଦୁଲୁକି ଉଠିଲା ।

ଏବେ ଛେଳିର ମଜା ଦେଖ । ସେ ବାଘ ପିଠି ଉପରୁ ତଳେ ପଡ଼ିଯାଇ ଭୟରେ ଅଚେତ ହୋଇଗଲା ।

ତାହା ଦେଖି ବିଲୁଆ କହିଲା- ଛେଳି ମନକୁ ମନ ରାଜା ବନି ଯାଉଥିଲା । ଆମ ରାଜା ରଡ଼ି ଛାଡିଲା ଠଉଁ ଏହାର ହୋଶ୍ ଉଡ଼ିଗଲାଣି ।

ପଶୁମାନେ ବାଘ ଆଗରେ ଛେଳିର ବାହାପିଆ କଥା କହିଲେ । ତାହା ଶୁଣି ବାଘ କହିଲା- ମୁଁ ଗୁଡାଏ ଖାଇ ଶୋଇଯାଇଥିଲି । ମୋ ପେଟରେ ଭୋକ ନ ଥିଲେ ଶିକାର ଆଡ଼େ ଆଖି ପକାଏନି । ତାହା ଦେଖି ଛେଳି ଭାବିଲା, ମୁଁ କୁଆଡ଼େ ତାକୁ ଡରୁଛି ।

ଟିକିଏ ପରେ ଛେଳିର ଚେତା ଫେରି ଆସିଲା । ସେ ହାତ ଯୋଡ଼ି ବାଘକୁ କହିଲା- ମହାରାଜ ମୋର ଭୁଲ ହୋଇଛି । ଦୟାକରି ମୋତେ ନ ମାରି ଛାଡ଼ିଦିଅ ।

ବାଘ ଛେଳିକୁ ନ ମାରି ଛାଡ଼ିଦେଲା । ସେ ଦିନଠାରୁ ସେ ଆଉ ବାହାପିଆ କଥା କହିଲାନି ।

**ନୀତିକଥା :** ନ ହେବା କଥାରେ ମଥା ପୂରାଅ ନାହିଁ । ପୁଣି ଅସମ୍ଭବ କଥା ଅନୁସାରେ କାମ କର ନାହିଁ । ସେମିତି କଲେ ଲୋକମାନେ ନାକରେ ହସିବେ । ନିଜ ଭୁଲ ମାନିଯିବା ଗୋଟିଏ ଭଲ ଗୁଣ । ଯେ ଭୁଲ ମାନେ, ସେ ବଡ଼ ଲୋକ ହୁଏ । ପେଟରେ ଭୋକ ନ ଥିଲେ ଖାଇବା ଠିକ୍ ନୁହେଁ ।

# ନୀତିବୋଧ ପ୍ରଶ୍ନ

୧. ବୁଲୁ ବାହାଦୂରୀ ଦେଖାଇବାକୁ ଯାଇ ଗୋଟିଏ ଓସାରିଆ କୂଅର ଏ ପଟରୁ ସେ ପଟକୁ କୁଦା ମାରିଲା । ତାର କ'ଣ ହୋଇଥିବ, ତଳେ ଦିଆଯାଇଥିବା ବିଷୟରୁ ଠିକ୍ କଥାଟି ବାଛି କହ ?

(କ) କୂଅରେ ପଡ଼ି ଖଣ୍ଡିଆଖାବରା ହେବ ।

(ଖ) କୂଅ ଆରପଟକୁ ସହଜରେ ଡେଇଁ ପଡ଼ିବ ।

(ଗ) କୂଅ ପାଖରେ ପଡ଼ିଯିବ ।

(ଘ) କୂଅ ଭିତରେ ନିରାପଦରେ ଠିଆ ହୋଇଯିବ ।

୨. ବୁଟୁ ତା ସାଙ୍ଗକୁ ଗାଳି ଦେଇଥିଲା । ପରେ ସେ ତାର ଭୁଲ ମାନିଗଲା । ତା ଫଳ କ'ଣ ହେବ, ବୁଝିବିଚାରି କହ ?

(କ) ସଭିଏଁ ବୁଟୁକୁ ଛିଛାକର କରିବେ ।

(ଖ) ତା ସାଙ୍ଗ ତାକୁ ବେଶି ଭଲ ପାଇବ ।

(ଗ) ବୁଟୁ ସବୁ ଦିନ ପାଇଁ ଛୋଟ ହୋଇଯିବ ।

(ଘ) ବୁଟୁ ନିଜକୁ ଛୋଟ ମନେ କରିବ ।



# ବୋକା କୋଉଠିକାର !

ଅନେକ ଦିନ ତଳର କଥା । ନଈକୂଳିଆ ଗାଁଟିଏ । ସେଠିକା ଲୋକମାନେ ପୂରା ଅପାଠୁଆ । ସେମାନେ ଜମି ଚାଷ କରି ପେଟ ପୋଷୁଥିଲେ । ସେମାନେ ବହୁତ ଖଟୁଥିଲେ । ହେଲେ ଫଳ କମ୍ ପାଉଥିଲେ । କାରଣ ସେମାନେ ମଥା ଖଟାଇ କାମ କରୁ ନଥିଲେ ।



ଦିନକର ଘଟଣା । ନଈକୂ କୁଆଡୁ ଗୋଟାଏ କଇଁଛ ଆସିଥିଲା । ଏତେ ବଡ଼ ଯେ, ତାକୁ ଦେଖିଲେ କଇଁଛ ବୋଲି

ମନେ ହେବନି । ନଈ କୂଳରେ ଟିକିଏ ବୁଲିବାକୁ ତାର ମନ ହେଲା । ସେ ପାଣିରୁ ବାହାରି ଆସି ନଈବାଲିରେ ଥିରି ଥିରି ଚାଲୁଥାଏ । ସକାଳର କଅଁଳ ଖରା ଓ ସୁଲୁସୁଲିଆ ପବନ ତାକୁ ବେଶ ଭଲ ଲାଗୁଥାଏ । ସେ ଆଗକୁ ଆଗକୁ ପାଦ ବଢ଼ାଉଥାଏ ।

ଏତିକିବେଳେ ସେ ଗାଁର ଲୋକଟି ଗାଧେଇବାକୁ ନଈକୂଳକୁ ଆସିଲା । କଇଁଛକୁ ଦେଖି ସେ ଭାବିଲା - ଏଟା ଗୋଟାଏ ଅଜବ ଜୀବ । ଅସୁର ପରି ଦେଖାଯାଉଛି । ଗାଁ ଆଡ଼େ ମୁହାଁଇଲାଣି । ଆମକୁ ଖାଇବାକୁ ଆସିଛି ନା କ'ଣ !

ଲୋକଟି ଭୟରେ ଗାଁକୁ ଯାଇ ପାଟି କଲା- ଭାଇମାନେ, ନଈକୂଳକୁ ଦୌଡ଼ିଆସ । ଅସୁର ପରି ଜୀବଟାଏ ଆମ ଗାଁ ଆଡ଼କୁ ମାଡ଼ି ଆସୁଛି । ଚାଲ, ସବୁ ଗାଁ ଲୋକ ମିଳିମିଶି କାମ କରିବା । ତା ନ ହେଲେ ସେ ଆମକୁ ଜଣ ଜଣ କରି ଖାଇଯିବ ।

ଗାଁ ଲୋକମାନେ ଡକାଡ଼କି ହୋଇ ନଈକୂଳକୁ ଦୌଡ଼ିଆସିଲେ । କିଏ ହାତରେ ବାଡ଼ି ଧରିଥାଏ । କିଏ ଧରିଥାଏ ଛୁରୀ । କାହା ହାତରେ କଟୁରି ତ, ଆଉ କାହା ହାତରେ କୁରାଢ଼ି । ଦା, ପନିକି ଆଦି ବି କେତେକ ଲୋକ ଧରିଥିଲେ ।

ଚାହୁଁ ଚାହୁଁ ସବୁ ଲୋକ ନଈକୂଳରେ ଜମିଗଲେ । ଦେଖିଲେ , ବିରାଟ ଏକ ଜୀବ ଗାଁ ଆଡକୁ ମୁହାଁଇଛି । ସେମାନେ ଏକାଠି ପାଟି କରିବାକୁ ଲାଗିଲେ ।

ତାହା ଦେଖି କଇଁଛ ଭାବିଲା- ଭାରି ଅଡୁଆରେ ପଡ଼ିଲି । ଏତେ ଲୋକ ଏକାଠି ହେଲେଣି । ମୋତେ ମାରିବାକୁ ବିଚାର କଲେଣି । ଏଇନା ମୁଁ କଣ କରିବି ? ଛାନିଆ ହୋଇ କିଛି ଲାଭ ନାହିଁ । ମଥା ଖଟାଇ କାମ କରିବାକୁ ପଡ଼ିବ ।

ଏତିକି ବେଳେ ଗାଁର ଲୋକଟିଏ କହିଲା- ଆରେ, ଏ ଅସୁରକୁ ବାଡ଼ିରେ ପିଟି ପିଟି ମାରିଦେବା ।

କଇଁଛ କହିଲା- ହଁ , ସେମିତି କର ।

ତାହା ଶୁଣି ଲୋକଟି କହିଲା- ଏଁ, ଏ କଣ ଏମିତି କହିଲାଣି ! ବାଡ଼ି ମାଡ଼ରେ ଏ ମରିବନି ବୋଧହୁଏ ।

ଆଉ ଗୋଟିଏ ଲୋକ କହିଲା- କଟୁରିରେ ଏହାକୁ କାଟି ଟିକି ଟିକି କରିଦେବା ।

କଇଁଛ କହିଲା- ହଁ , ସେମିତି କର ।

ଲୋକମାନେ ଭାବିଲେ, କେହି ନିଜ ମରଣ ବାଟ କହେନି । ତେଣୁ କଟୁରିରେ କାଟିଲେ ସେ ଜମା ମରିବନି ।

ତାପରେ ଆଉ ଜଣେ ଲୋକ କହିଲା-ନା , ବାଡ଼ି କି କଟୁରୀ କାମ ଦେବନି । କେହି ଜଣେ ଗାଁକୁ ଦୌଡ଼ିଯାଉ । ସେଠୁ କିଛି ପାଳକୁଟା ଓ ଦିଆସିଲି ନେଇଆସୁ । ଏ ଅସୁର ଉପରେ ତାହା ପକାଇ ନିଆଁ ଲଗାଇ ଦେବା । ତାହାହେଲେ ଏ ଜଳିପୋଡ଼ି ମରିଯିବ ।

କଇଁଛ କହିଲା- ସେଇଆ କର ।

ତାହା ଶୁଣି ଲୋକମାନେ ନିଜ ନିଜ ଭିତରେ କୁହାକୁହି ହେଲେ- ଏ କ'ଣ ଏମିତି କହିଲାଣି ! ତାହାହେଲେ ନିଆଁରେ ଏ ମରିବ ନାହିଁ, ଜଣାଯାଉଛି ।

କଇଁଛ ଭାବୁଥାଏ- ମୁଁ ପାଣିଠାରୁ ବହୁତ ଦୂର ଆସି ଯାଇଛି । ପାଣି ପାଖକୁ ଚାଲି ଚାଲି ଯିବା ପାଇଁ ମୋତେ ବହୁତ ସମୟ ଲାଗିଯିବ । ଏମାନେ ଚାହିଁଲେ ମୋତେ ସହଜରେ ମାରିଦେଇ ପାରିବେ । ଆଉ କିଛି ନୂଆ ଫିକର ବାହାର କରିବାକୁ ପଡ଼ିବ ।

କଇଁଛ ବଡ଼ ପାଟିରେ କହିଲା- ମୋତେ ତୁମେ ବାଡ଼ିରେ ପିଟ, କଟୁରିରେ ହାଣ, କି ମୋ ଦେହରେ ନିଆଁ ଲଗାଅ । ଯାହା କରୁଛ କର । ହେଲେ ତୁମକୁ ମୁଁ ହାତ ଯୋଡୁଛି । ମୋତେ ପାଣି ଭିତରକୁ ନିଅନି । ତାକୁ ମୋର ଭାରି ଡ଼ର । ପାଣି ଭିତରେ ପଡ଼ିଲେ ମୁଁ ମରିଯିବି । ମୋତେ ଏତିକି ଦୟାକର ।

ଲୋକମାନେ ନିଜ ନିଜ ଭିତରେ କୁହାକୁହି ହେଲେ- ଦେଖିଲ, ଏତେବେଳ ଯାଏଁ ଅସୁରଟା ଆମକୁ ଭୁଆଁ ବୁଲାଉଥିଲା । ଏବେ ତା ପାଟିରେ ତା ମରଣର ବାଟ ଆମକୁ ବତାଇ ଦେଇଛି । ଚାଲ, ଏହାକୁ ନେଇ ପାଣିରେ ପକାଇଦେବା । ଅସୁର ବେଟା ମଲା ବୋଲି ଜାଣ ।

ସେମାନେ ଏକାଠି ମିଶି କଇଁଛକୁ ନଈ ଆଡ଼େ ଘୋଷାରି ନେଲେ । କଇଁଛ ମିଛରେ ବିକଳ ହେଲା ଭଳି କହିଲା- ମୋତେ ଏତିକି ଦୟା କର । ପାଣି ଭିତରେ ମୋତେ ଛାଡ଼ନି । ମୁଁ ମରିଯିବି ।

ଲୋକମାନେ ତାକଥା ଶୁଣି ହୋ ହୋ କରି ହସିବାକୁ ଲାଗିଲେ । ସେମାନେ କଇଁଛକୁ ଠେଲି ଠେଲି ନଇ ପାଣିରେ ଛାଡ଼ିଦେଲେ । ଏବେ କଇଁଛର ଖୁସି ଦେଖେ କିଏ ? ସେ ହସି ହସି କହିଲା- ଯାହା କରିଛ, ମୋ ଭଲ ପାଇଁ କରିଛ । ପାଣି ହେଲା ମୋ ଘର । ଏଣିକି ମୋର ଆଉ କିଛି ଭୟ ନାହିଁ ।



ଲୋକମାନେ ପାଟି କଲେ- ଆରେ ହେ, ଅସୁରଟା କ'ଣ ପାଣିରେ ମଜାରେ ପହଁରିଲାଣି । ଏଟା ମରିବ ଆଉ କିମିତି ?

କଇଁଛ କହିଲା- ବୋକା କୋଉଠିକାର ! ମୁଁ ହେଉଛି କଇଁଛ । ମୁଁ ପାଣିର ଜୀବ । ମୋତେ ତୁମେ ମୋ ଘରେ ଛାଡ଼ି ମାରିବାକୁ ଚାହୁଁଥିଲ ? ହେଉ, ମୁଁ ଚାଲିଲି ଟା-ଟା !

ଗାଁ ଲୋକମାନେ ଆଉ କରିବେ କଣ ? ବୋକାପରି ଏ ତା ମୁହଁକୁ, ସେ ଯା ମୁହଁକୁ ଅନାଇ ରହିଲେ । ତାପରେ ସେମାନେ ଯେ ଯାହାର ଘରକୁ ଫେରିଗଲେ ।

**ନୀତିକଥା :** ଚକ୍ଷୁକୁଟା କାମ କରି କିଛି ଲାଭ ନାହିଁ । ମଥା ଖଟାଇ କାମ କରିବା ଉଚିତ । ତାହା ହେଲେ କମ୍ ସମୟରେ ଓ ସହଜରେ ବଡ଼ ବଡ଼ କାମ କରି ପାରିବ । ବିପଦ ବେଳେ ସାହସର ସହିତ କାମ କରିବା ଦରକାର । ଅଚିହ୍ନା ଲୋକର କଥାରେ ଭୁଲି ନ ଯାଇ ବୁଝି ବିଚାରି କାମ କରିବା ଉଚିତ ।

## ନୀତିବୋଧ ପ୍ରଶ୍ନ

**୧. ରାତିରେ ଦଳେ ଡକାୟତ ତୁମ ଗାଁରେ ପଶି ବୋମା ଫୁଟାଇଲେ । ଗାଁ ଲୋକମାନେ କ'ଣ କରିବା ଠିକ୍ ହେବ, କୁହ ?**

(କ) ଠେଙ୍ଗାବାଡ଼ି ଧରି ଡକାୟତମାନଙ୍କ ସହିତ ଲଢ଼େଇ କରିବେ ।
(ଖ) ଯେ ଯାହାର ଦୁଆର ବନ୍ଦ କରି ଘର ଭିତରେ ରହିବେ ।
(ଗ) ଚାନ୍ଦା କରି ସେମାନଙ୍କୁ କିଛି ମୋଟା ଟଙ୍କା ଦେବେ ।
(ଘ) ଲୁଚି ଛପି ଯାଇ ପୁଲିସ୍‌କୁ ଖବର ଦେବେ ।

**୨. କିଏ ଠିକ୍ କଲା ଓ କିଏ ଭୁଲ୍ କଲା , କୁହ ।**

(କ) ସୁର ବିଜୁଳି ତାରକୁ ଖାଲି ହାତରେ ଛୁଇଁବାକୁ ଗଲା ।
(ଖ) ହର ସାପ ଗାତରେ ହାତ ମାରିଲା ।
(ଗ) ଟିକୁ ମାରଣା ମଇଁଷିଠାରୁ ଦୂରେଇ ରହିଲା ।
(ଘ) ବୁଟୁ ପାଣି ପାଇପ ଖୋଲି ଚାଲି ଆସିଲା ।
(ଙ) ମିଟୁ ରାସ୍ତା ଉପରୁ ଭଙ୍ଗା କାଚ ବୋତଲଟି ଉଠାଇନେଲା ।
(ଚ) ମିକି ଅଚ୍ଛଣା ଲୋକର କଥାକୁ ବିଶ୍ୱାସ କଲାନି ।
(ଛ) ବିଜୁ ଖାଲି ହାତରେ ନେଉଳକୁ ଧରିବାକୁ ଗଲା ।
(ଜ) ରାଜୁ ବାଘଯନ୍ତା ଭିତରକୁ ହାତ ବଢ଼ାଇଲା ।
(ଝ) କୁନା ଏଣେତେଣେ ଚାହିଁ ଚାହିଁ ସାଇକେଲ୍ ଚଳାଉଥିଲା ।
(ଞ) ଟୁନା ବଗିଚାର ଫାଟକ ଖୋଲା ରଖିଦେଲା ।

